# ଜୀବିତ-ଦର୍ପଣ

ଯାତ୍ରସନ

# LIFE BEYOND DEATH.

**By**

**Kabichandra Kali Charan Patnaik,**
**Banki**




କାଳିକା ପ୍ରସାଦ ବନଭୋଜନରେ
ମହାମାନ୍ୟ ଓଡ଼ିଶା ଲାଟ ମହୋଦୟଙ୍କ ଶୁଭାଗମନ ଉପଲକ୍ଷେ
ତା ୧୮ । ୨ । ୪୦ ରିଖରେ
ଅଭିନୀତ ।

ପ୍ରଥମ ମୁଦ୍ରଣ—୧୯୪୦

ମୂଲ୍ୟ-ଅଣା

ରଚନା – କାଳୀଚରଣ କବିଚନ୍ଦ୍ର ।
ସଂଚାଳନା – ଖିତୀନ୍ ବାନର୍ଜି ।
ସଜ୍ଜାକର – ନରେନ ଭଞ୍ଜ ।
ସ୍ୱରଶିଳ୍ପୀ – ନିକୁଞ୍ଜ ବୋଷ ।

---

ଭୂମିକାରେ :–

**ପୁରୁଷ :–**

ଦାମୋଦର ଜହ୍ନୁସ୍ୱ – (ମର୍ଦ୍ଧଠୀ ଜମିଦାର) ବିଶ୍ୱାନନ୍ଦ ମହାନ୍ତି ।
ରମାନାଥ – ( „ ପୁତ୍ର ) ବିମଲ୍ ଘୋଷ ।
ବିନୋଦ ବାବୁ – (ରମାନାଥର ବନ୍ଧୁ) ଖଗେନ୍ ମିତ୍ର ।
ଡାକ୍ତର ବାବୁ – ସତ୍ୟ ଘୋଷ ।
ଗୁମାସ୍ତା – କୃଷ୍ଣ ପଟ୍ଟନାୟକ ।
ସଭାସଦ୍‌ଗଣ – ଗୋପାଳ ପଟ୍ଟନାୟକ, ଅଭିନନ୍ଦ, ଗୌରୀ ଦାସ ।

**ସ୍ତ୍ରୀ –**

ରତ୍ନ – (ରମାନାଥର ମର୍ଦ୍ଧଠୀ ପତ୍ନୀ) ଲୋକା ଜଗତି ।
ଇଲା – (ପ୍ରଗତି ଶିଳା ଯୁବତୀ) ଫେଣୀ ବୋଷ ।
ଝୁରୀ – (ରମାର ଦାସୀ) ବଶ ମହାନ୍ତି ।
ସଭ୍ୟା – ମାଧବ ତ୍ରିପାଠୀ, ସୁରେନ୍ ଷଡଙ୍ଗୀ ଇତ୍ୟାଦି

---

# ପ୍ରଥମ ଦୃଶ୍ୟ

ଘର ଭିତର — ସ୍ୱାମୀ ଓ ସ୍ତ୍ରୀ

ସ୍ୱାମୀ-ପ୍ରଗତିର ଯୁବକ । ସ୍ତ୍ରୀ-କୋଣ ଭୂଆସୁଣୀ ।
(ସ୍ୱାମୀର ନାମ ଉମାନାଥ, ସ୍ତ୍ରୀର ନାମ ରତନ ।
ରତନ ବସି ଠାକୁର ସେବା କରୁଥିଲା-
ଦାସୀ (ସୁମୀ) ଆସି କହିଲା, ବଡ଼ ତର ତର ହୋଇ)

ସୁମୀ—ବାବୁ ଆଇଲେଣି ମାଆ ! ତଳଘରେ ।

ରତନ — (ତର ତର ହୋଇ) ଇଟଲୋ ! ମୁଁ କଅଣ କରୁଛି ? ବାକ୍ସ କାହିଁଲୋ, ବାକ୍ସ କାହିଁ ? ନେଏ ଲୋ, ଠାକୁରଙ୍କୁ ନେଇଯା ! ବେଗେ ଗୁଛେଇ ପକେଇ ତଳକୁ ନେ । (ଗୁଛେଇଦେଲେ ଦୁହେଁ ମିଶି, ଦାସୀ ନେଇଗଲା ସେ ସବୁ) ଇଟଲୋ ସୁମୀ, ବହିଟା ଆଣିଥିବୁ ।

ସୁମୀ—କୋଉ ବହିଟା ମ ?

ରତନ — ସେଇମ, ଯାକ ଗୁଣ୍ଡୁଭରେ ଅଛି । ସେଇ ଇଂରାଜୀ ବହିଟା — ମଲା କାହିଁ ନଗା — ତା ନାଆଁଟା ମୋର ମନେ ନାହିଁ । ସେଇ— ସେଇ ମ । ସେଇ ନାଲିଆ ମଲାଟ ! (ଘର ଗୁଡ଼ା ଝାଡ଼ି ପକେଇ ଟିକିଏ ସଜାକରି ଦେଇ ସଜାଡ଼ି

ସାରି, ସୁମୀର ଉତ୍ତର ହେବାରୁ ବିରକ୍ତ ହୋଇ କହୁଲେ)
ସୁମୀ ! ଶୋଇ ଯାଉଛୁ କି । ଏଇନେ ଆସିଲେ ମୋ ଉପରେ ବରଷିବ ଯେ ଗାଳି ! କୁଆଡ଼େ ଗଲା ଏଇଠା ଏତେବେଳଯାଏ ? ବେଗେ ଆସି ମରୁଛ ହେଲେ ! ସୁମୀ !

ସୁମୀ—ନଇଁ, ନଇଁ ।

ରତନ—ଉଠେ ମରଣ ହଉ । ଆରେ ! ଟିକିଏ ବେଗେ ଆ ଭଲା ମାଗୁଣୀ ! (ହେଉଠଥା ଘୋର ହସ ଶୁଭିଲା) ହେଉ ! ଆଇଚଲୁ କି କଅଣ ? ସୁମୀ !

ସୁମୀ—(ଦୁଇ ଚନ୍ଦ୍ରଖଣ୍ଡ ବହି ଆଣି ଦେଖାଇଲା ଖଣ୍ଡି ଖଣ୍ଡି କରି) ଏଇଠା ?

ରତନ—ତୋ ମୁଣ୍ଡ ! କହିଲି ଦେଉ ପାନପେଡ଼ରେ ଥିଲା ।

ସୁମୀ—ଏଇଠା ନୁହେଁ ?

ରତନ—ହଁ, ଆଜ ଏଇଠା ସେଇଠା କଅଣ କରୁଥିଲୁ ? ଯା ବାପାଙ୍କ ପାଖେ ଥିବୁ । ଡାକ୍ତର ଆସିଲେ କଅଣ ଔଷଧ ଦବ କି କଅଣ କଅଣ କରିବାକୁ କହିବ, ବେଗେ ଆସି ମୋତେ କହିବୁ ।

ସୁମୀ—ହୁଁ (ଗଲା ଯାଉ ଯାଉ ଫେରି ଆସି, ଠାରେ ଜଣାଇଁ ଦେଲା ଯେ ବାବୁ ଆସୁଛନ୍ତି — ଗୁଲିଗଲା) ।

ରତନ—(ଔଟଣୀ ହାଣି ଚୌକିଏ କଣରେ ବସି ବହି ମେଲାଇଲେ । ସ୍ୱାମୀ ରମାନାଥ ଖଣ୍ଡେ ସିଗାରେଟ୍ ଟାଣି ଟାଣି ଆସୁ ଆସୁ ଦେଖିଲେ ରତନ ମନ ଯୋଗୀ ଚୌକୀପର ବହିଧରି ବସିଛି)

ରମା—Hallow ! ( ଖୁସିହୋଇ ) Dear Rotan, you are reading---Yes. So glad ! That's like a good boy. ଉଁ ? (ଟିକିଏ ଝୁକାଇ ଦେଇ ) Yes-Rotan !

ରତନ—ଉଁ—

ରମା—Again that dam ଉଁ ? ଫେର ? Bad. Ssay —Yes. Come on, read-ଆସ ! ପଢିବସ । ( ଓଟଣା କାଢି ) ଛି, ଛି, ଏସବୁ କଅଣ ?

ରତନ— (ଓଢଣାଟା ଟାଣି ) ନାଁ ଥାଉ । ମୁଁ ପଢୁଚି ।

ରମା— କଣ ପଢୁଚ ? ଆଜିଯାଏ ତ ତମର ମରହଟି ଢଙ୍ଗ ଗଲା ନାହିଁ । ମୁଣ୍ଡରେ ଗୋଟେ ବଣ ହାତର ଘଣ୍ଟାଟୋପ ! କଅଣ ତୁମର ଚେହେରା ଦେଖିଲେ ସନ୍ତାଦ୍ଧ ଗୁଳିଯାଏ ? Dam your ସନ୍ତାଦ୍ଧ ! କାଢ ସେଠାକୁ । ପଢବସି । [ଓଟଣା କାଢିଦେଲା]

ରତନ— ନାଁ, ମୁଁ ପଢୁଚି ।

ରମା— ଦେଖି, ପଢ ।

ରତନ— ବ, ଏ, ଟି,

ରମା— ହଁ, Bat, କଅଣ ହେଲା ?

ରତନ— ବା ଆ ଟ ।

ରମା— No — ବ୍ୟାଟ୍ । Bat — ବ୍ୟାଟ୍ । ବ୍ୟାଟ୍ ମାନେ ?

ରତନ— ମାନେ, ମାନେ — ଉଁ—ସୋରିଷ, ରସୁଣ, ଜିରା ମରିଚ ବାଟଣା —

ରମା— (ବିରକ୍ତ ହୋଇ) Dam your ସୋରିଷ ରସୁଣ !

ରତନ— ହଁ ମ, ତୁଣରେ ଦଅନ୍ତ ନାହିଁ ? ଆମେ କହୁଁ ନାହିଁ ସୋରିଷ ବାଟ୍ଲ ରସୁଣ ବାଟ୍ଲ ।

ରମା – ଆରେ ନାଁ, ନାଁ । ଇଂରାଜୀରେ ବ୍ୟାଟ୍ କହନ୍ତି ବୁଝାଏ- ଏଇ ବ୍ୟାଟ୍, ବ୍ୟାଟ୍ । ମାନେ, ମାନେ (ହାତରେ ଠାରି) ବ୍ୟାଟ । Just like your--what shall I call it— ଏଇ ଚଟୁ, ଚଟୁପରି ଗୋଟାଏ ଜିନସ ।

ରତନ – ହଁ, ହଁ ବୁଝିଲି ମାଠଚଟୁ !

ରମା – Dam your ମାଠ ଚଟୁ !

ରତନ – ଟେଁଟେବ ଜାଲୁଚନ୍ତୁ ! କଣା କଣା ହୋଇଥାଏ !

ରମା – No, no, ଆଚ୍ଛା Ball ଜାଣ ? Ball ? କେବେ ଦେଖିଛ ?

ରତନ – ମଲ୍, ବଅଲ୍ ଦେଖିନାହିଁ ? କେତେ ଦେଖିଚି । ଗଣ୍ଡା ଗଣ୍ଡା, ଦଣ ପଣ ।

ରମା – କେମିତି କହିଲ ?

ରତନ – ମଲ୍, ତମର ଏଇ ସହରର ବଜାରରେ ନଥିବେ ଯିନା, ଆମର ତ ଗାଆଁ ଗାଆଁରେ ଘରେ ଘରେ ସମସ୍ତଙ୍କ ଗୁହାଳରେ ହଳେ ଦିହଳ ବଅଲ ଦେଖିବ । ଯେଉଁ ଗାଗ୍ଲବ ହଉ, ପଟେ ହେଲେ ତାର ଥିବ ।

ରମା – ବୁଝୁନାହିଁ ମୁଁ । ତା ମାନେ ?

ରତନ – (ହସି) ତୁମେ ବଅଲ ଜାଣି ନାଁ ! ଏଇ ଧଳା, କଳା, ବଅଲ ମ ! ହଳ କରନ୍ତି !

ରମା – ନାଃ, Impossible to manage with this idiot wife ?

ସୁମୀ – (ଆସି ଠିଆ ହେଲା)

ରମା – କଅଣ ଲୋ ସୁମୀ !

ସୁମୀ – ମାଆଙ୍କୁ ଡାକ ଆସିଛି !

ରମା – କାହିଁକି ?

ସୁମୀ—ଡାକ୍ତରବାବୁ କହିଲେ ବୁଢ଼ା ସାଆନ୍ତଙ୍କ ତଣ୍ଟି ଶୁଖି ଯାଉଛି ।

ରମା—ଚୋପ୍‌ଶଠ, ମାଆ ଯାଇ କଅଣ କରିବେ ? Dam old creature ! Let him dei.

ସୁମୀ—ଖାଲି ଖୋଜୁ ହଉଛି ସବୁ ।

ରମା—Yes. Good. Let him die. Go away.Clear Clear. ଯା, ତୁ ଯା ମାଆଙ୍କର ଏଇଟେନ ପଢ଼ିବା time.

ସୁମୀ—ଡାକ୍ତର ବସିଛନ୍ତି । ବାର୍ଲି ଟିକିଏ ମଗାଉଛନ୍ତି ସବୁ ! ମାଆ ଗଲେ ସିନା ଦେବେ !

ରମା—ତୁ, ଯାଃ !

ନନ୍ଦନ—( କାନ୍ଧ ପକେଇ ଦେଇ ) ଗୁଲ, ଗୁଲ, (ଉଠି ଗଲେ)

ରମା—(ରାଗି) Dam idiot wife, must be replaced.

[ ଧଡ଼ ଧଡ଼ କରି ଉଠି ଗୁଳ୍‌ଗଲେ ]

---

## ୨ୟ ଦୃଶ୍ୟ

[ ଶଚୀନାଥ, ରମାନାଥର ବନ୍ଧୁ – ହାତରେ କିଛି ପ୍ରେମ-ଉପହାର ନେଇ 'ଇଳା'—ଜଣେ ପ୍ରଗତିଶୀଳାର ପ୍ରସାଧନ ବେଳେ ଗୀତ ଗାଉଥିବା ଅବସରରେ ଆସି ପହଞ୍ଚୁଛି ।]

ଗୀତ

ଇଳା —

ବହ ଧୀରେ ଧୀରେ, ଅରେ ମଳୟ ଶ୍ରୈଷ !
ଫୁଲ ଅନ୍ତର ଭରି—ଅଳି ପ୍ରେମ ପଶରା । ୦ ।

ମନଆରେ — ବନଆରେ
ସପନ ଘୁରେ ।
[ଗଜ] ଜୀବନସ୍ତୁ ଫେର ଦଅ ଦଅ
ପରମ ତାର, ହୃଦୟରେ ଧରୁଁ ପ୍ରିୟ !
ରସିବ, ହସିବ, ଅଧ ଅଧରେ ।

(ବିନୋଦ ଅଙ୍କ ନିଃସନ୍ଦ ଯେପରି 'ଇଲା'ର ଗୀତକୁ ଉପଭୋଗ କରୁଥିଲା-ଅଇନାରେ ଇଲା ତାର ଛାଇଦେଖି ଚମକି, ପଛକୁ ଘୁରିବା ସଙ୍ଗେ ସଙ୍ଗେ କହିଲା )

ଇଲା—Nonsence ! କିଏ ? [ପଛକୁ ଘୁରି] ଓଃ, ବିନୋଦ ବାବୁ, ଆପଣ ? ହସୁଛ ?—Excuse me.

ବିନୋଦ—( ହସି ହସି ) No matter. ଇଲାଦେବୀ । ( ବସି ପଡ଼ିଲେ) ଆଜ୍ ସବୁ ଭଲତ ?

ଇଲା—ଏଇତ ଅଧଘଣ୍ଟାଏ ହେବ କଲେଜରୁ ଫେରିଲି । ମନେକରିଥିଲି ଟିକିଏ —

ବିନୋଦ—ବୁଲି ଯିବେ ? Quite O. K. କିନ୍ତୁ କୋଉଠିକି ଯିବେ ? ଆଜ୍ ତା ପୂର୍ବରୁ ଏଇସବୁ — ଏଗୁଡ଼କ (ହସି ବଢ଼ାଇଲେ)

ଇଲା—Nice [ ବ୍ରୁଚ ଗୋଟିଏ ଧରି ]

ବିନୋଦ—Presents —

ଇଲା — [ ସାଗ୍ରହ ଦୃଷ୍ଟିରେ ] To-

ବିନୋଦ — [ଅଙ୍ଗୁଠିରେ ତାର ଇଲାକୁ ଦେଖାଇ ଦେଲେ ]

ଇଲା — Me Lord !

ବିନୋଦ — And this (ଛଟି ଟିଏ ପକେଟରୁ କାଢ଼ି ଦେଖାଇଲେ)

ଇଲା — Letter ?

ବିନୋଦ — From---

ଇଲା — you ?

ବିନୋଦ — Oh, no. your —

ଇଲା — Dam your —

ବିନୋଦ—ରମାନାଥ !

ଇଲା — Oh, Is it ? (ଛଡ଼ାଇ ନେଲା)

ବିନୋଦ — (ହସୁଥାଏ ଖାଲି)

ଇଲା — କିନ୍ତୁ ଏଥିରେ — [ଚିଠି ପଢ଼ୁ ପଢ଼ୁ]

ବିନୋଦ — ଆପଣଙ୍କର ମତ ?

ଇଲା — It will be only a repeatation. ଅନେକ ଦିନୁ ତ ଆପଣ ଜାଣନ୍ତି ।

ବିନୋଦ — କିନ୍ତୁ ଆମ୍ଭମାନଙ୍କର ପରମ ପିତାଙ୍କର ଆଶୀର୍ବାଦରେ ଏତେବେଳେ ସେ ଶୁଭ ଦିନ ଉପସ୍ଥିତ । Hurry up ଇଲା ଦେବୀ ! Hurry up ! ବିଳମ୍ବେ କାଳଂ ।

ଇଲା — କିନ୍ତୁ ତାଙ୍କର Old father ଯେ —

ବିନୋ — Oh ! Dam that old idiot ! Who cares for him ?

ଇଲା — ତା କଣ ହୋଇପାରେ ? ତାଙ୍କର ମତ ଯେ—

ବିନୋଦ — ଦର୍କାର ନାହିଁ । He is dying.

ଇଲା — Is it ?

ବିନୋଦ— Yes. ପ୍ରାୟ ! About to die. ବୋଧହୁଏ ଇତିମଧ୍ୟରେ ଶେଷ ହୋଇ ଯାଇଥିବେ କିମ୍ବା ଯାଉଥିବେ କିନ୍ତୁ ସେ କାଳି ରଖନ୍ତୁ ଇଲାଦେବୀ ! ନିଶ୍ଚୟ ମରଣ ।

ଇଳା – ଡାକ୍ତର କଅଣ ? –

ବିନୋଦ – ଧ୍ରୁବ Dying declaration ଦେଉଛନ୍ତି । ରମାନାଥ ଡାକ୍ତରଙ୍କଠୁ ସେ ସବୁ ବୁଝୁଥିଲା ।

ଇଳା – ତେବେ ଏତେବେଳେ ଏସବୁ Love-present –

ବିନୋଦ – Love is love. Man-is-mortal ମରଣ ଶୀଳ ଜଗତ ! ତା ବୋଲି ଏ ସମୟରେ ଯେ ମୋର ବନ୍ଧୁ---ମୋର ପ୍ରିୟ Beloved ବନ୍ଧୁ, ରମାନାଥ ଧୈର୍ଯ୍ୟ ହରାଇ ବସିବ ଏବଂ that he will forget his--his you- ( ହସି ) ହା ! ହା ! ଇଳାଦେବୀ ! What do you think ! ରମାନାଥ is a good boy. ପ୍ରଗତି ଶୀଳ blood, ନୂଆ ରକ୍ତ, ପ୍ରେମର ମର୍ଯ୍ୟାଦା ତାକୁ ଜଣା and he understands in and in, out and out.

ଇଳା—କିନ୍ତୁ after all, poor old man ତାଙ୍କର father. ଆପଣ କହୁଛନ୍ତି ଯେ ପୁଣି death bed ରେ ! ରମାନାଥ ବାବୁ ଯେ ତାଙ୍କର ଏକମାତ୍ର –

ବିନୋଦ—ସନ୍ତାନ ! ତାର କର୍ତ୍ତବ୍ୟ ସେ ପାଳନ କରିବାକୁ ଆଦୌ ତ୍ରୁଟି କରିନାହିଁ । ବରଂ ସାଧାରଣଙ୍କ ଅପେକ୍ଷା ଢେର ଢେର ବେଶୀ ଭାବରେ । ଏପରି ବ୍ୟବସ୍ଥା କରାଯାଇଛି ଯହିଁରେ କି ବୁଢ଼ା ଦାମୋଦର ଅନୁଭବ କରିବେ ଯେ ରମାନାଥ ପରି ସତ୍‌ପୁତ୍ରର ସେ ପିତା !

ଇଳା – ମାନେ ?

ବିନୋଦ – [ ପକେଟରୁ କାଢ଼ି ଚିଠିଟିଏ ଦେଲା ଇଳା ହାତରେ ] ପଢ଼ି ଦେଖ !

ଇଲା – [ପଢ଼ି ] ଓଃ ସେ Condolance meeting ର ନିମନ୍ତ୍ରଣ

ବିନୋଦ – ଛପା ହେଲା । ଏଇ ଯେ ମୁଁ ପ୍ରେସକୁ ବାହାରୁଛି ।

ଇଲା – and how is it ?

ବିନୋଦ – ମାନେ ?

ଇଲା – Before one's death !

ବିନୋଦ – ନିଶ୍ଚୟ, ସେଇତ ମଜା । ପିତୃଦେବଙ୍କ ମୃତ୍ୟୁ ପୂର୍ବରୁ ଗ ସେ ହେବା ଭଲ । ତା ନୋହିଲେ ସେଇ ପୁରୁଣା ମରହଟି କାଲର ଶ୍ରାଦ୍ଧ, ତର୍ପଣ । Dam ! ଲୋକ ମରିଯିବାପରେ ତାର ଶ୍ରାଦ୍ଧ କର, ତର୍ପଣ କର, କଣ୍ଡୋଲାନ୍‌ସ ସଭା କର, ସେ କଅଣ ଦେଖିବାକୁ ଆସିବ ? Old foolish idias ! ଗସ୍ ! ଏ ଯେ ଜୀବନ୍ତ, ଜ୍ୱଳନ୍ତ ! Look here. Hurry up ! By this time ରମାନାଥ ବୋଧହୁଏ ତାର ବକ୍ତୃତାଟା ତଆରି କରି ସାରିଲେଣି । ଆପଣଙ୍କୁ ବି କିଛି କହିବାକୁ ହେବ ।

ଇଲା – କିନ୍ତୁ Excuse me. ମୁଁ ତ ପ୍ରସ୍ତୁତ ହୋଇ ପାରିବିନାହିଁ ।

ବିନୋଦ – No no, ସେ କେମିତି ହେବ ? ବରଂ ଆପଣ ହିଁ ସେ meeting ଟା preside କରିବେ । ପ୍ରଗତିର ଯୁଗ । ନାରୀର ଯୁଗ ! Educated Lady – ବିଶେଷତଃ ଆପଣ ତାଙ୍କର ଉଦ୍ଦିଷ୍ଟ – No.no. You must come.

ଇଲା – ନାଁ, ମୁଁ ଯିବି । କିନ୍ତୁ –

ବିନୋଦ – [ଘଡ଼ି ଦେଖି] ଆଉ ବିଳମ୍ବ ନାହିଁ ଇଲାଦେବୀ ! Too late. ଗାଡ଼ି ରହିଛି ବାହାରେ । ଆସନ୍ତୁ ମୁଁ ଫେରି press କୁ ଯାଇ ଏଠା ଛୁଟି ଆଣିବି ଆଉ Daily paper ରୁ news ଟା ଦେଇ ଆସିବି ।

ଲିଲା — ଆଜ୍ଞା, ଆପଣ ଟିକିଏ ଅପେକ୍ଷା କରନ୍ତୁ ।

ବିନୋଦ — Oh, my good God! ଅପେକ୍ଷା ? ଅସମ୍ଭବ ! It is high time ! ତାଙ୍କର କଅଣ କହୁଛୁ ଜାଣିଛ ? The old man is about to breath his last withen an hour hence ଠିକ୍ ଘଣ୍ଟାକ ଭିତରେ ।

ଲିଲା — Is it ?

ବିନୋଦ — Yes. Come on. Look shirp. It is time--time-ଲିଲାଦେବୀ । You see ଯଦି ଇତି ମଧ୍ୟରେ The old man expires-I am sorry--ସେ ରମାନାଥର କିଛି ସେବା ପାଇ ପାରିବେ ନାହିଁ । ବୃଥାହେବ ତାଙ୍କର ଏତେ ଖର୍ଚ୍ଚ କରି ରମାନାଥଙ୍କୁ ଏମ୍.ଏ. ପଢ଼େଇବା । My poor friend will be so sorry ! Please. Please. Be kind ଲିଲାଦେବୀ ! [ହାତଧରି ଟାଣି] Car is ready. Please-ଲିଲାଦେବି ! Please--[ଟାଣି ଟାଣି ନେଇ ଗଲେ]

---

## ୩ୟ ଦୃଶ୍ୟ

(ରମାନାଥ ଚୌକିରେ ବସି ଶୋକସଭାର Speach ଲେଖି ପଢ଼ୁଥିଲେ । ଅଳ୍ପ ଦୂରରେ ଗୁମାସ୍ତା ବୁଢ଼ା ବସି ଗୋଟିଏ ଫର୍ଦ୍ଦ ତିଆରି କରୁଥିଲେ ।)

ରମା — [ରୁମାଲରେ ମୁହଁ ପୋଛୁଥାରି] ଶ୍ରଦ୍ଧେୟ ସଭାପତି, ଭଦ୍ରମହିଳା ଓ ଭଦ୍ର ମଣ୍ଡଳୀ ! ଏ ଶୋକ ସଭାରେ —

ଗୁମାସ୍ତା — (ଉଠିଆସି) ଆଜ୍ଞା, ପୁରବାସୀଙ୍କ ଲାଗି —

ରମା — ଓ୍ୱାଃ ! କି Idiot ! ଦେଖୁନା ? ମୋର Speach ଟା ଲେଖୁଛି ଟିକିଏ ଅପେକ୍ଷା କରି ପାରୁନା ?

ଗୁମାସ୍ତା - ଅଜ୍ଞା ! [ଯଥାସ୍ଥାନରେ ଉପବେଶନ କଲା]

ରମା — ଏ ଶୋକ ସଭାରେ ଆଜ୍ଞା, ଆଜ୍ଞା, ମୁଁ ଆପଣମାନଙ୍କ ସମ୍ମୁଖରେ କହିବାକୁ ଯାଉଛି ଯେ ସେଇ ଜମିଦାର ମହାଜନ ବାବୁ ଦାମୋଦର ଜହ୍ନା ଅଜ୍ଞା ଆପଣମାନଙ୍କୁ ଶୋକ ସାଗରରେ ଭେଳରେ ଭସାଇ ବୁଡ଼ାଇ ସ୍ୱର୍ଗ ଧାମକୁ—ମାନେ-ଇହ ଲୀଳା ଶେଷକରି ଅର୍ଥାତ୍, ଉଁ, ଉଁ, ଅର୍ଥାତ୍ ଅକାଳ—ହୁଁ, ଗୁମାସ୍ତାଏ ! ତାହାଙ୍କର ବୟସ ?

ଗୁମାସ୍ତା—ହାକିମଙ୍କ ବୟସ ପଞ୍ଚାବନ ପୂରି ଛପନ ଚାଲିଛି ।

ରମା—ତା ମାନେ Fifty six ? ଏଇତ ! ବେଶୀ ଆଉ କଅଣ ?

ଗୁମାସ୍ତା—ଆଜ୍ଞା ହଁ, ବେଶୀ ଅଉ କଅଣ ? ଆମ ଗାଁରେ ଛେଉ ଠେର ଲୋକ ତାଙ୍କଠୁଁ ଅଧିକ ବୟସରେ ବଡ଼ହେବେ ।

ରମା—Right you. ତୁମେ ଠିକ୍ କହିଲ ତ ଚଞ୍ଚଳ କର । ତାହେଲେ, ଅକାଳ ଛପନ ବର୍ଷ ବୟସରେ ଆମ ମାନଙ୍କ ମଧ୍ୟରୁ ଗୁଲି ଗଲେ- ଏଁ-ଗୁଲି ଯାଉଅଛନ୍ତି-ଯାଇ ଅଛନ୍ତି । ଏ ଶୋକସଭା ତାଙ୍କର —

ଗୁମାସ୍ତା—(ଜିଠି ଅଷି) କଦଳୀ ପକା ?

ରମା—Dam ନଦକାଦିବା ! କଅଣ ହେବ ? Condolarce meeting ରେ Tea party ଲାଗି କି ତାଲିକା ତୁମେ କହିଛ — ଦେଖେଁ

ଗୁମାସ୍ତା—(ତାଲିକା ଦେଖାଇ) ଗ୍ରନ୍ଥଶାସ୍ତ୍ର ପାଇଁ ଯାହା ଲେଖା —

ବିନୋଦ — Dam Your ଗ୍ରନ୍ଥଶାସ୍ତ୍ର ! Vernacular ! ଏ ଠି ପାଠି (ପଢ଼ି) ଅଳୁଆ ଗୁଡ଼ଳ, ପାଚିଲା କଦଳୀ, ନଡ଼ିଆଲୁଗା, ଛେନା ଗୁଡ଼ କାହିଁକି ଏସବୁ ? (ଚିଡ଼ିହେଲ) କାଠେନଂ ଦେଖିଛ ? B. N. R. ଅଫିସ ଯିବେ ?

ଗୁମାସ୍ତା—ଡାକ୍ତରଙ୍କ କଅଣ ହବ ଏତେ ଡେରିକଲେ ? ବୁଢ଼ା ସାଆନ୍ତଙ୍କ ଦେହ ଭଲ ହୋଇ ଯାଉ ଘର ମରାମତି କେବେ ଦେଖାଯିବ ।

ରମା—Nonsence ! ଡାକ୍ତରଙ୍କ କୁଡ଼େଁ କଣ୍ଟାକ୍ଟର, B. N. R. କଣ୍ଟାକ୍ଟର, ଷ୍ଟେସନ ପାଖେ, ସେଇଠିକି ଯା, Order ନେଇ ଆସିବ । ଶହେ ଭଦ୍ରଲୋକଙ୍କ ପାଇଁ ଗ୍ରାଣ୍ଡ ସରଞ୍ଜାମ ! Tea-party ବୁଝିଲ ? ଗ୍ରୁ' ଗ୍ରୁ' ଜାଣ ?

ଗୁମାସ୍ତା—ଡାକ୍ତର କଅଣ ବୁଢ଼ା ସାଆନ୍ତଙ୍କୁ ଗ୍ରୁ' ଦବାକୁ କହିଲେ ? ବେଶ୍, ସେଥିରେ ଯେବେ ଭଲ ହବ ତାଇ ହଉ ଆଜ୍ଞା । ସେ ଟିକେମେଡେ ଦାଣ୍ଡରେ ବୁଲିଲେ ଦେଖ । ସେ ତା' ହଉ, ଯା ହଉ, କରନ୍ତୁ ପିମିତି ବଡ଼ୋଜାତି ଡାକ୍ତର ।

ରମା—ତୋତେ କେବେ ଭାଷା ବୁଝେ ? (ଚାଲିକା କରି) ଯା, ଏ ଚିଠି ନିଅ, ଚେହେରାଣୀରୁ ପଚାଶଟା ଟଙ୍କା ନେଇ ଏହେନ B. N. R. କଣ୍ଟାକ୍ଟରଙ୍କୁ ଯାଇ, ତାଙ୍କୁ ମୋର ଏ ଚିଠି ଦିଅ । ଯାଅ, Hopeless fellow.

ଗୁମାସ୍ତା—ରେଲ ଷ୍ଟେସନ ପାଖେ ?

ରମା—(ବିରକ୍ତ ହୋଇ) ହଁ, ହଁ, ବି. ଏନ୍. ଆର୍. କଣ୍ଟାକ୍ଟରଙ୍କ ପଚାରି ନବ ସେଇଠି । ଗୋଟେ ଗାଡ଼ିକରି ଚାଲିଯାଅ, ଡେରିହବ ।

ଗୁମାସ୍ତା—( କାଗଜ ପତ୍ର ବାନ୍ଧୁ ବାନ୍ଧୁ ) ଆଜ୍ଞା ! ( ଗଲେ )

( ଡାକ୍ତର ଆସିଲେ )

ରମା—Come on Doctor. Good morning ! Take your seat please.

ଡାକ୍ତର – Thank you ରମାନାଥ ବାବୁ ! You are very fortunate.

ରମା – well ! ଅବସ୍ଥା କେମିତି ?

ଡାକ୍ତର – No anxity.

ରମା – ମାନେ ?

ଡାକ୍ତର – Improving.

ରମା – Towards ?

ଡାକ୍ତର – Better. ଭଲ ଅଛନ୍ତି ।

ରମା – କାରୁ, ମୁଁ ଏଯ Condolance meeting ର ସବୁ ଯୋଗାଡ଼ କରି ସାରିଲିଣି Docter.

ଡାକ୍ତର – Wonderfull !

ରମା – ମାନେ ?

ଡାକ୍ତର – ଅଶ୍ଚର୍ଯ୍ୟ !

ରମା ମାନେ ? ଏତେବଡ଼ ଲୋକ ! Specially my father ! Father of an M. A. gold medalist. ଆପଣ କଅଣ ମନେ କରନ୍ତି ତାଙ୍କର ଗୋଟେ Condolance meeting ର ଦରକାର ନାହିଁ ? ଏଥିରେ ଆଉ ଅଶ୍ଚର୍ଯ୍ୟର କଥା କେଉଁଠି ରହିଲା ?

ଡାକ୍ତର – କାରୁ The patient is all right.

ରମା – ଆରେ Dam your patient ! ମୁଁ ଯେ ଏଣେ ସମସ୍ତ ଯୋଗାଡ଼ କରି ସାରିଛି । ଖବରକାଗଜ ପର୍ଯ୍ୟନ୍ତ just ଏଇ ଗୁମାସ୍ତା ଗଲେ କାଟରିଙ୍ଗ୍‌କୁ Tea ର order ପାଇଁ ।

ଡାଃ – But Your father is all right.

ରମା — କିନ୍ତୁ ବାବାଙ୍କ ଏତେ ରୋଗ ଗାଢ଼ ! ନିମନ୍ତ୍ରଣ କରି ଯାଉଛି ! ତାଙ୍କ ଏଥର ବାଞ୍ଚିବେ ନାଁ । He shall have to d.y. ଅନ୍ତରେ ଏକ ନୂଆ ମଣ୍ଡା ହଉଛି ।

ଡାଃ — କିନ୍ତୁ —

ରମା — (ଡାକ୍ତରର ହାତଧରି) Oh ! no, no Doctor, no କିନ୍ତୁ । Father shall have to dei. ଯେମିତି ହେଉ ମୋର ମାନ ରଖ । Please help me.

ବିନୋଦ — ( ଆସି ) ‹s, Yes । ଇନ୍ଦ୍ରଦେବ ମଧ୍ୟ — Come on ଇନ୍ଦ୍ରଦେବ । Please, Please. must help you too.

ରମା — କିନ୍ତୁ — ଡାକ୍ତର—

ଇନ୍ଦ୍ର — ( ପ୍ରବେଶ କରି ) But dear Ramanath Babu ଆପଣ ଏମିତି ଅଧୀର ହେବା ଉଚିତ ନୁହେଁ ।

ବିନୋଦ — ବନ୍ଧୁ Dear ! ମନେଥିବ ଭୁମର୍ଃ— Our କବିବର ରାଧାନାଥ କହିଛନ୍ତି—of course—ତାଙ୍କର ଭାଷାରେଃ— "କେହି ବହିବାକୁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ ସବେଁ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ" Our Sanskrit says:- ଗତ ଓ ମୃତ ମାନଙ୍କ ଲାଗିଃ— ନାନୁଶୋଚନ୍ତି ପଣ୍ଡିତାଃ ।

ଇନ୍ଦ୍ର — ନିଶ୍ଚୟ ! ନିଶ୍ଚୟ ! ଦୁଃଖୀତ ହେବାର କିଛି କାରଣ ନାହିଁ ରମାନାଥ ବାବୁ । Man is mortal-Logic.

ରମା — କିନ୍ତୁ Doctor, Please help me.

ବିନୋଦ — ଅସମ୍ଭବ । ପଡ଼ିନୁଁ ? ନିଶ୍ଚିତ କେଜ ବାଧିତେ ? ଡାକ୍ତର କଅଣ କରିବେ ଆଜ ? ଔଷଧ ଦେବେ, injection ଦେବେ, କିନ୍ତୁ ତୋର father ର life ତ ଦେଇ

ପାଣ୍ଡବେ ନାହିଁ । ଯାହା ଯାଏ-ଯାଏ । ଶରଦ୍ଧନ ଲାଗିଥାଏ ।
Don't be sorry dear. Don't be sorry ! ( ଡେଠ ଧରି କହିଲା )

ରମା — (ଡାକ୍ତରଙ୍କ ଡେଠଧରି) ଡାକ୍ତର ! Please help me. I am undone.

ଡା: — But Ramanath Babu, I am undone--

ବିନୋଦ — Yes. Surely you are undone ! What shall you do ? What can you do ?

ଇଳା — ବିନୋଦ ବାବୁ ! Poor Ramanath Babu is helpless ଆପଣ ନିମନ୍ତ୍ରିତ ଭଦ୍ରଲୋକମାନଙ୍କୁ receive କରିବାକୁ ହେବ ଯେ !

ବିନୋଦ — ନିଶ୍ଚୟ । ଆମେ ଗାଏ ବନ୍ଧୁ, ବିପଦେ ବନ୍ଧୁ, ରାଜଦ୍ୱାରେ ଶ୍ମଶାନେଚ ! ଶ୍ମଶାନ ଆଉ କାହାକୁ କହନ୍ତି ?

ଇଳା — ଅନେକ ଭଦ୍ରଲୋକ ନିମନ୍ତ୍ରିତ । ସେଥିରେ ରମାନାଥ ବାବୁଙ୍କୁ ଯେମିତି ଦେଖୁଛି ସୌଭାଗ୍ୟ ଦ୍ୱାର ବସିଛନ୍ତି । ଆମେ କଣ କଲେ ଭଲ ହେବ ? କେମିତି ? ତାଙ୍କର Condolance ମିଟିଂଟା ଯେ ଶେଷରେ ଗୋଟାଏ Farce ହୋଇଯିବ ।

ବିନୋଦ — Seat ଫିଟ୍ ଗୁଡ଼ arrange କରିବାକୁ ଅଛି ଯେ ! ଅନେକ କାମ !

ଇଳା — ତାହେଲେ ? Doctor Babu, please take care of the poor fellow. Please help him. ଆସନ୍ତୁ ବିନୋଦ ବାବୁ ବୈଠକ ଖାନାକୁ ।

ବିନୋଦ — ଡାକ୍ତର ବାବୁ ! ରମାନାଥଙ୍କୁ ଘରକୁ ନେଇଯାଇ ଟିକିଏ stimulant mixture ପିଇବାର ବ୍ୟବସ୍ଥା କରନ୍ତୁ

ତାର ଯେମିତ ଅବସ୍ଥା ତହିଁମାଳ । କିନ୍ତୁ ସାବଧାନ ! Don't allow him to see his father. Otherwise ତାର ମୂର୍ଚ୍ଛା ହେବାର ଅସମ୍ଭବ ନୁହେ । ଆପଣ ଜାଣନ୍ତି ନାହିଁ ବୋଧ-ହୁଏ ସେ ବଡ଼ sincere. A very obedient son-quite a domestic child still ବଡ଼ ପିତୃ ଭକ୍ତ ଆମ ରମାନାଥ । ଆପଣ ଘରକୁ ତାକୁ ନଅନ୍ତୁ । ବିଶ୍ରାମ ! ବିଶ୍ରାମ ! (ଦୁହେଁ ଗଲେ)

ଡା: — ବେଶ୍- ତାଇହେବ (କେବାଙ୍କୁ ବସିଲେ)

ରମା — (କାନ୍ଦ କାନ୍ଦ ହୋଇ) Doctor ! I am undone ;

ଡା: — And I too !

ରମାନାଥଙ୍କ ବୈଠକ ଖାନା ।

( ସୁସଜ୍ଜିତ ଆସନ ସାଜେଣ ଉଲା ଦେଖା ଅର୍ପିନା, ଅନେକ ଭଦ୍ରବ୍ୟକ୍ତି ସମାସୀନ । ପ୍ରଥମେ ବିନୋଦ ଉଠି କହିଲେ )

ବିନୋଦ—ଭଗିଣୀ ଓ ଭ୍ରାତ ମହୋଦୟମାନେ,

ଅଜ ମୋର ଶ୍ରଦ୍ଧେୟ ବନ୍ଧୁ ମିଷ୍ଟର ରମନାଥ ଜହ୍ଲସ୍ତୀ ଏମ୍. ଏ.ଙ୍କ ଦ୍ଵାରା ଆହୂତ ଏ ବୃହତ୍ Condolance meeting ର ଉଦ୍ଦେଶ୍ୟ କଣ୍ଟଙ୍କ ଆପଣମାନଙ୍କୁ ଅଜଣା ନାହିଁ । ଏହା ଆମ୍ଭମାନଙ୍କର ମିଷ୍ଟର ରମାନାଥଙ୍କ ପିତା ସ୍ୱନାମ--ଧନ୍ୟ ... ଆମ୍ଭ ... ଉତ୍କଳର ... ଭ ... ଓ ... ଘଟେଇ ସେହି ଚିରସ୍ମରଣୀୟ ସଦ୍ଗତି ... ନାମରେ ... ହୋଇଅଛି । ଅବଶ୍ୟ ଆସମାନେ ସମସ୍ତେ ମିଷ୍ଟର ରମାନାଥଙ୍କର ଏ noble idea ଓ ଏହି ପ୍ରଗତି ଯୁଗର ଅଭୂତପୂର୍ବ ଉଦାହରଣରେ

ମାନେକି-unic instance ପ୍ରଦର୍ଶନ ଲାଗି ତାଙ୍କୁ ଧନ୍ୟବାଦ ସତ୍ତ୍ୱ praise ନକରି ରହି ପାରୁନେ ନାହିଁ । Moreover ଅତ୍ୟନ୍ତ ସୁଖର କଥା ଯେ ଆପଣମାନେ ଆଜ୍ଞା ଏଠାରେ ପ୍ରଗଲ୍ଭଶୀଳା ପରମା ଶ୍ରଦ୍ଧେୟା ଶ୍ରୀମତୀଙ୍କ-I mean Miss ଲୋକେଦବୀଙ୍କର ପଦାର୍ପଣ ପାଇଛୁଁ । ଏବଂ ମୋର ମତରେ in other words ପଦାର୍ପଣ ପାଇ ଧନ୍ୟ ମଧ୍ୟ ହୋଇଛୁଁ । ଏ ନାରୀପ୍ରଗତି ଯୁଗରେ ଏହା କମ୍ ବଡ଼ କଥା ନୁହେଁ । ଅତଏବ I propose, ମୋର ମତରେ - ମୋର କ୍ଷୁଦ୍ର ମତରେ ଅଦ୍ୟକାର ବିରାଟ meeting ରେ ତାଙ୍କୁ ସଭାପତି I am sorry, ସଭାପତ୍ନୀ ରୂପେ ଆପଣମାନେ ଗ୍ରହଣ କରନ୍ତୁ ଏବଂ ସମସ୍ତେ ଏଥିରେ ରାଜି ଥିଲେ କରତାଳି ଦ୍ୱାରା ମୋର ଏ ପ୍ରସ୍ତାବ Second କରି ମୋତେ ଏବଂ by the by ମୋର ପରମବନ୍ଧୁ ମିଷ୍ଟର ରମାନାଥଙ୍କୁ ଧନ୍ୟ କରନ୍ତୁ । ଏତିକି କହି ମୁଁ ଆସନ ଗ୍ରହଣ କଲି । (ବସିଲେ)

ସମସ୍ତେ—(କରତାଳି ଦ୍ୱାରା ସମର୍ଥନ କଲା ଉତ୍ତାରୁ ବିନୋଦ ଲୀଳା ଦେବୀଙ୍କୁ ଆସନ ନିର୍ଦ୍ଦେଶ କରି ବସିବାକୁ ଅନୁରୋଧ କଲେ । ସେ ଆସନ ଗ୍ରହଣ କଲେ )

ବିନୋଦ—ଆଜି ଦୁଃଖ କଥା- I am sorry to inform ଯେ - ମୋର ବନ୍ଧୁ ମିଃ ରମାନାଥ ଯେ କି ଏ Condolence meeting ର ଆବାହକ, ସେ ତାଙ୍କ dear father ଙ୍କ ମୃତ୍ୟୁ ଅବସରରେ ଦାରୁଣ ଶୋକରେ ଆଘାତ ପାଇ ପ୍ରାୟ ମୂର୍ଚ୍ଛାଗତ ଏବଂ now under doctor's help ରେ ଅଛନ୍ତି । ତାଙ୍କ behalf ରେ ମୁଁ ଆମ୍ଭମାନଙ୍କର ସଭାପତ୍ନୀଙ୍କୁ ଏହି ଭିକ୍ଷା I mean ଭକ୍ତି ଓ ପ୍ରୀତି ପୂର୍ଣ୍ଣ ମାଳା ଦେଇ ଅର୍ପଣ ମାନଙ୍କ

ଅନୁମତି କ୍ରମେ garlending କରିବାକୁ ଯାଉଅଛୁ (ମାଳ ଦେବାସାଧ୍ୟ ନାହିଁ ତାଳି ଦେଲେ ଓ ସଭାସ୍ଥ ଲୋକେ ମଧ୍ୟ ଦେଲେ)

ଲୀଳା—( ଉଠି ) ସଭ୍ୟ ଓ ସଭ୍ୟା ମହୋଦୟ ଗଣ ! ଆଜି ଆପଣ ମାନେ ଯେଉଁଠାରେ ଯେ ସମ୍ମାନ, ଏ Condclance meeting ରେ ବର୍ତ୍ତିମାନ୍ —

ବିନୋଦ—(ଉଠି) A minute please. ମୁଁ ଆମ୍ଭମାନଙ୍କର ଶ୍ରୀମତୀ ସଭାପତ୍ନୀଙ୍କର ଆଦେଶକ୍ରମେ ଗୋଟିଏ କଥା ଆପଣମାନଙ୍କୁ ନିବେଦନ କରିବାକୁ ଯାଉଅଛୁଛି ଯେ ସମୟାଭାବରୁ ଏବଂ ଶ୍ରୀଯୁକ୍ତ ଦାମୋଦର ଜହ୍ନସ୍ୱାଙ୍କ ମୃତ୍ୟୁକାଳ ଅତି ନିକଟ ହୋଇ ଆସିଥିବାରୁ ଏହି ଶୋକସଭା ବଡ଼ ତରତରରେ ଡକା ହୋଇଅଛି । ତେଣୁ କରି ଏଟିକେଟ ଅନୁସାରେ ଏ ସଭାର Programme ଛପା ହୋଇ ପାରି ନାହିଁ, Draft agenda ଟି ମୁଁ ଏଠାରେ ପାଠ କରି ଦେଉଅଛୁ ଯଥା:—

୧—ଶ୍ରୀମତୀ ସଭାପତ୍ନୀ ନିର୍ବାଚନ

୨—ପ୍ରେତାତ୍ମାର ସଦ୍‌ଗତି କାମନା —

୩—ଭଦ୍ର ବ୍ୟକ୍ତିଗଣଙ୍କ ବକ୍ତୃତା

୪—ମିଷ୍ଟର ରମାନାଥ ଜହ୍ନସ୍ୱା ଏମ୍, ଏ ଉପସ୍ଥିତ ହୋଇ ନ ପାରିବାରୁ ତଦୀୟ ପ୍ରିୟ ବନ୍ଧୁ ଶ୍ରୀଯୁକ୍ତ ବିନୋଦ ବହ୍ମାଙ୍କ ଦ୍ୱାରା ତାଙ୍କ ବକ୍ତୃତା ପାଠ

୫—ସଭାପତ୍ନୀଙ୍କ ଭାଷଣ-ଓ ତାଙ୍କୁ ଧନ୍ୟବାଦ ପ୍ରଦାନ ।

୬—ଚା ଓ ଲଘୁ ଜଳଯୋଗ ପରେ ସଭାବିସର୍ଜନ ।

— ଲୀଳା — ( ବସି ପଡ଼ିଲେ )

ଲଲା—ଆପଣମାନେ ଅଁକ୍ରାକାର ସୁଖସଭାର Agenda ଶ୍ରବଣ କଲେ । ବର୍ତ୍ତମାନ Ist thing ହେଉଛି ପ୍ରେତାତ୍ମାର ସଦ୍‌ଗତି ନିମିତ୍ତ ସମସ୍ତେ ଆସନ ତ୍ୟାଗ କରି ଦକ୍ଷିଣ ପକ୍ଷେ ପାଞ୍ଚ ମିନଟ ଦଣ୍ଡାୟମାନ ହୋଇ ପରମ ପିତା ପରମେଶ୍ୱରଙ୍କ ଚରଣରେ ପ୍ରାର୍ଥନା କରନ୍ତୁ ଯେ ତାଙ୍କ କରୁଣାରୁ ପ୍ରେତାତ୍ମାର ସଦ୍‌ଗତି ହେଉ, ଏବଂ at the same time ଶୋକ ସନ୍ତପ୍ତ ପରିବାର ଓ ମିଷ୍ଟର ରମାନାଥଙ୍କୁ ସାନ୍ତ୍ୱନା ଦିଅନ୍ତୁ ।

ସମସ୍ତେ—( ଚକ୍ଷୁମୁଦ୍ରି ଦଣ୍ଡାୟମାନ ହୋଇ ପ୍ରାର୍ଥନା କଲେ ) ( ବୃଦ୍ଧ ଦାମୋଦର ପୁତ୍ର ରମାନାଥଙ୍କ କାନ ଧରି ସହସା ଏହି ପ୍ରାର୍ଥନା କାଳରେ ସେଠାରେ ଉପସ୍ଥିତ ହୋଇ କହିଲେ )

ଦାମୋଦର—ଧନ୍ୟବାଦ ! ଧନ୍ୟବାଦ ! ଆଜ୍ଞେ ଠାଇ ଦେଖନ୍ତୁ ପରମ ପିତା ଆପଣମାନଙ୍କର ପ୍ରାର୍ଥନା ଶୁଣିପାରି ଶୁଭ ମୁହୂର୍ତ୍ତରେ ଆପଣ ମାନଙ୍କର ବନ୍ଧୁ ଏଇ ରମାନାଥ ଜନ୍ମଦାତା ଏବଂ ଏଙ୍କ ବୃଦ୍ଧ ପିତା ଦାମୋଦରଙ୍କ ପ୍ରେତାତ୍ମାକୁ ସଶରୀରରେ ଏଇ ବୃହତ୍ ଶୋକ ସଭାରେ ଯୋଗଦେଇ ଏ ସଭାର ଆବାହକଙ୍କୁ ବରମାଳା ( ବେଙ୍କରେ ପଡ଼ିଥିବା ଡାଇଗ୍ନୋଜ ବୋଲି ବଡଅକ୍ଷରର ଲେଖା ହାର ଦେଖାଇ) ଦାନ ପୂର୍ବକ ତାଙ୍କର ଜୀବନ୍ତ ତର୍ପଣ କରିବାକୁ ପଠାଇ-ଛନ୍ତି । (କାନଧରି ଦୁଇଙ୍କୁ ଟେଲି ଦେଲେ)

ସମସ୍ତେ—( ଭୟରେ ଆସନ ତ୍ୟାଗକରି ) ଆଁ ? ଆଁ ?

ଦ୍ୱାମୋସ୍ତ୍ରୀ—( ପ୍ରବେଶ ହୋଇ ) ଆହା ! ହା ! ଗୁଳିପିବେ ନାହିଁ, ଗୁଳିପିବେ ନାହିଁ । ଅନ୍ଧ୍ରଯେ-ଗୁ ଆଉ ଲଘୁ ଜଳଯୋଗ

ଡାକ୍ତର — Yes, Yes, sorry, am a bit late, The CONDOLANC ( ପିତା ଓ ପୁତ୍ରଙ୍କୁ ଦେଖି ) MEETING !
(ଜୋରରେ ଆସୁ ଆସୁ ଗୁମାସ୍ତାଙ୍କ ହସ୍ତସ୍ଥିତ ଟ୍ରେରେ ଧାତୁଡ଼ି ଗୁ ଦେହରେ ଢଳିଗଲା । ଚମକି କହିଲେ )

HALL(W !

( ଡାକ୍ତର ଓ ଗୁମାସ୍ତା ତେଣିଁପଡ଼ି ଚିତ୍କାର କଲେ )



କଟକ — କାଳୀ ପ୍ରେସରେ, ଶ୍ରୀ ପୂର୍ଣ୍ଣଚନ୍ଦ୍ର ସିଂହଙ୍କ ଦ୍ୱାରା ମୁଦ୍ରିତ ।

